ନୟାଗଡର

# ମରୁଡ଼ି କାହାଣୀ

ତା ୨୦।୧୦।୧୯୯୬



ଲେଖକ:— **ଗୋବିନ୍ଦ ଚନ୍ଦ୍ର ସ୍ୱାଇଁ**

ସା:-ବଡଗୋରଡା,

ପୋ: କେଶରପୁର, ନୟାଗଡ

ପ୍ରକାଶକ:— **ନାରାୟଣ ପ୍ରଧାନ**

ସା:-ବଡଗୋରଡା,

ପୋ:-କେଶରପୁର, ନୟାଗଡ

ମୂଲ୍ୟ — ଟ ୨-୫୦ ପ. ମାତ୍ର

(ଦାଣ୍ଡରେ ଶୁଭିଲା ବମ କୃଷ୍ଣ ବେଣୁଙ୍ଗଇ ବୃନ୍ଦେ)

ଜୟ ଜୟ ମହାପ୍ରଭୁ ଧର୍ମ ସନାତନ
ଗୋଚର ହୋଇ ଆମ୍ଭର କଟିଗଲା ଅନ୍ନ
ପ୍ରଭୁ ହେ କଳାଶ୍ରୀମୁଖ
ଅନ୍ନକଷ୍ଟରୁ କଳଣ ନାହିଁ ଆଜ ଦୁଃଖ ।୧

ଶହେବର୍ଷ ମଧ୍ୟେ କେବେଏପରି ଘଟଣା
ସାରା ଓଡ଼ିଶା ମଟୁଣ୍ଡ ନଥିଲାଟି ଶୁଣ ।
ପ୍ରଭୁ ବ୍ରହ୍ମାଣ୍ଡ କରତା
ଜୀବନ ରଖିବାପାଇଁ ଘୂରୁଅଛୁ ମଥା ।୨

ନବରଙ୍ଗପୁର, ଝଣ୍ଟପାହି, ଜୟପୁର,
ଡଆଁପଡ଼ା, କରଡ଼ାବଣି, ମୁକୁଟାପୁର
ଗ୍ରାମଅଟଇ ଝୁମ୍ପୁରି,
ସାରା ନୟାଗଡ଼ ପୁଣି ପଡ଼ିଅଛି ଦୁଃଖ,
ବିଧାତାଙ୍କର ଏ କୁଷ୍ଟ ହୋଇଲେ ଭଗାର ।୩

ମୁଥାଗାଡ଼ିଆ, ଲେଖନ; ହରିହରପୁର,
କାଳିଅ ଅଟଳୀ ଶାଖେ ଗୋପିନାଥପୁର
ଗ୍ରାମଅଟେ ବେଲବଣି,
ସେସମୌଜାରେ ସମୁଦାୟ ହରିଜନ ଶ୍ରେଣୀ
ଦୁଃଖେ ଚଳୁଛନ୍ତି ବୋଝ ଗାଣ୍ଡୁଆକୁ ବୁଣି ।୪

ଜାମୁଖୋଲ, ସୋଲପଠା, ଗ୍ରାମ କୁମ୍ଭାରଆ
ମାଣ୍ଡୁପଡ଼ା, ବାଲପାଟଣା, ଟିଆପାକିଆ
ଗ୍ରାମଟି ଲେଙ୍କୁଡ଼ିପଡ଼ା,
ଗନ୍ଧାର ଚଉରହଟ୍ଟି ହୋଇ ଲଙ୍କୁ ଙ୍କଡ଼ା,
ନବାନ୍ନ ଖାଇବା ପାଇଁ ନାହିଁ ଏକଖଣ୍ଡା ।୫

ନାଟ୍ରାଣି,  ଧବଳାଟ, କଇଥଗାଡ଼ିଆ,
ଦୈଶାଡୋଳ ଲେଖାଡୋଲ୍ ବାଲୁଦ୍ଧି ପଡ଼ିଆ
ଗ୍ରାମଅଟେ ଗବଦଳ,
ଘରୁ ବାହାରିଲା ନାହିଁ ଜୁଆଳ ଲଙ୍ଗଳ,
କୃଷିଭୂମି ପଡ଼ିରହିଲା ଷୀରଗୃଜନ ।୬

ଗୃଜଳବସ୍ତା ନଅଣ, ଧାନଟି ଗୃଷଣ,
କେବୋଲଇ ଆମ୍ଭଘରୁ  ହୋଇଗଲା ଶେଷ
ବଞ୍ଚିଦେବ ଗୋରୁଗାଇ
ଢଙ୍କିବା ଘମଣ୍ଡେ କଣିବାକୁ କେହ୍ବନାହିଁ
ଜଦି ବଞ୍ଚିନକରିବା ଖାଦ୍ୟ ମିଳୁନାହିଁ ।୭

ବ୍ରଜବଲ୍ଲଭପୁର, ଗ୍ରାମ ଗୋପନ୍ତପଲ୍ଲୀ,
ଖଣ୍ଡୁରୁବନ୍ଧ, ଅନ୍ଧୁଆଡ଼ିପା; ଷଠେ ଆପଲ୍ଲୀ
ଚବ୍ରୁଁ ଅଟେ ଗୋଡ଼ିଆଳ,
ସେହ୍ବପରି ଅବସ୍ଥାପେ ଅଟେ ନଡ଼ିଆଳ
କକରିବା ବୋଲି ବସି ହୋଉଛନ୍ତି ଘଳ ।୮

ହ୍ରିଞ୍ଜିନାପାଡ଼ିଆ, ପାଖରେ ବଡ଼ିଆପାଲ୍ଲି
ଷଦ୍ବାଦେଇପୁର, ପଲ୍ଲୀଶାଶନଟି ରହ୍ବ
ଏହ୍ବ ଦୁଇଟି ଶାଶନ,
ଗଛଧାନ ଜଳଅଛୁ ନୁହେଁ କେଉଷଣ,
ଦୁଃଖରେ ଚଳିବେ କାହୁଁ ମିଳବଟେ ଅନ୍ନ ।୯

ମେଇ, ଅଶ୍ୱସ୍ତୁଡେଡା, ଦେଖିଅଛୁ ମୂର୍ଦ୍ଧ
ଚଉଦିଗେ ଯାହାବର୍ଷା । ସେମୌଜାକୁ ନାହିଁ
ବଡ ବିପତ୍ତିର କଥା,
ସେମୌଜାକୁ କୁଟକଲେ ଦଇବ ବିଧାତା,
ଅକର୍ମ କରିଲେ ବୋଲି କରୁଛନ୍ତି ଚିନ୍ତା ।୧୦

କେଶରପୁର, ନାଗମୁଣ୍ଡାଳି, ମାନପୁର
ଏପରି ମରୁଡ଼ି କେବେ ନଥିଲା ଆଗର
ଗ୍ରାମ ନାମ ବିଞ୍ଝିଗିରି,
ଦୁଃଖରେ ଚଳୁଛନ୍ତି ସେ ଲୁହାକାମ କରି
ମରୁଡ଼ି ସମସ୍ୟା ଯୋଗେ ନୋହୁଛି ବିକରି ।୧୧

କାଳିକାପ୍ରସାଦ ସେ ବେଗୁନିଆଁ ପାଟଣା
ରଣପାଟଣା, ଚିନସ୍ତ ଅଟଟ ନଜସଣା
ବରଷା ଧାରା ଶ୍ରାବଣ,
ଅନପ ଝଟ୍ଟିକି ପଡ଼ିଲେ ନଷ୍ଟେ ଯିବ ପ୍ରାଣ,
ସୂର୍ଯ୍ୟଙ୍କର ବଢ଼ୁଅଛି ପ୍ରଖର କିରଣ ।୧୨

ଦଶ ପାଞ୍ଚ ପଞ୍ଚାନବେ ତାରିଖ ସେଦିନ
ବୈଶାଖରେ ବନ୍ୟା ଦେଖିଥିବେଟି ଆପଣ
ଜଳ ହୋଇଥିଲା ପୂର୍ଣ୍ଣ,
ନଦୀ ନାଳ ଉଚ୍ଚ ନୀଚ ସମସ୍ତ ସମାନ ।
ପଦା ହୁଦା ଜମିବାଡ଼ି ଖେଳୁଥିଲେ ମୀନ ।୧୩

॥ ୩ ॥

ବୈଶାଖରେ ବନ୍ୟା ଶ୍ରାବଣେ ବସୁଧା ଫାଟ
ତାଙ୍କୁ ଯାଙ୍କୁ କରୁଛୁ ଯେ ପ୍ରଭୁ ନନ୍ଦ ଗୃଠ
କା ହସ୍ତରେ କଛୁ ନାହିଁ,
ଯିଏ ମାରୁଛୁ ଆମ୍ଭଙ୍କୁ ବଞ୍ଚାଇବ ସେହି,
ସେତେବ ଧନ ବଞ୍ଚିଥିବା ରାମନାମ ଧାଇ ।୧୪

ବାଙ୍କଶାଳୁଆ, ମଜୁଗପଲ୍ଲୀ, ଇଟାମାଟି
ଭକଣ, ବାଦବ, ଘରପଡ଼ା, ସୁନାନଟି
ପ୍ରଭୁ ହେ ଧବଳେଶ୍ୱର,
କେତେ ଯାତ୍ରୀ ଗୃଲଛନ୍ତି କରି ସୋମବାର,
ମାନସିକ ବ୍ରତ ପୂର୍ଣ୍ଣ ହେଉଛୁ ତାଙ୍କର ।୧୫

ବରକୋଳପାଟଣା ଯେଅଁଠ ପଣ୍ଡୁସର
କଣ୍ଢିପଦା, ଟିପୁରଯେ, ଅଟେ ନାଗପୁର
ପ୍ରଭୁଙ୍କୁ କରବାଧାନ,
ନୟାଗଡ଼ ପ୍ରଜାମୁଣ୍ଡୁଁ କଟିଗଲ ଅର୍ଦ୍ଧ,
ଏହାଦେଖି ରୋଷନ୍ଦଯେ କନ୍ଦୁଛି ନୋଧନ ।୧୬

ଏହି ପଦରେ ସମାପ୍ତ ଗୀତ ହେଲ ଭାଇ
ଅନ୍ୟବୃତ୍ତ କୋଇମ୍ବୁଁ ଲେଖୁଅଛୁ ତହିଁ
ହେବ ଯୀତା ରେହଦ୍ବୁ୯,
ପଢିବା ପାଇଁକ ଭାଇ ନହୁଅ ବରେକ୍ତ,
ଭଲମନ୍ଦ ବସ୍ତୁରଯେ କରବ ଯସ୍ତ ।୧୭

—*—

(ଯୀଛାଗ୍ରେର ବୃତ୍ତ)

ଜୟଜୟ ମହାପ୍ରଭୁ ସଂସାର ପାଳକ,
ପାଳକ ଲେଖା କମାଇଁ ହେଲ ଅପାଳକ
ଦୟାନିଧି ହେ,
ମରୁଡ଼ି କରିବା ନୁହେଁ ବିଧିହେ ।୧

କଦମ୍ବଝର, ଗିରିଡ଼ିପଲ୍ଲୀ, ସୁନାମୁହିଁ,
ଦୋଳଗୋବିନ୍ଦପୁର, ଡହର୍ଗି, ଭଟଘାଟ
ନାହିଁ ନର ହେ,
କଇଥପଲ୍ଲି ସେହିପ୍ରକାରହେ ।୨

ହନୁମନ୍ତଆ, ଦୁଣ୍ଡ୍ରର, କୋମଣ୍ଡ୍ର, କୁରଳ
ଖଜୁରିଆ, ପାଣ୍ଡିରପଡା, ମଦନପୁର
ଜମିମାଣ ହେ,
ପାଞ୍ଚନଉତକୁ ଅନୁମାନ ହେ ।୩

ଭାମୁଘାଟ, ଗୋଡପଲ୍ଲି, ଦେଉଗାଁ, ଭଲ୍ୟାଡ଼,
ଓଡଗ୍ରାମ, ରଙ୍ଗଣିପାଟଣା, ପନ୍ତ୍ରଖାଡ
ଗଚ୍ଛଧାନ ହେ,
ଦେଉପା ପଛରେ ହେଲ ମ୍ଳାନହେ ।୪

ଗାଡସଂଖ୍ୟା ଅଦାୟ ହେଉଥିଲ ଜିଆ ।
ମୂଳପାର ହେଲ କରେ ପୋଷିବା ପେଟ,
ଦୟାନିଧି ହେ,
କପର ବଞ୍ଚିବୁ ଦଅ ବୁଦ୍ଧି ହେ ।୫

ବାଢ଼ାଡାପିଠା, ନଣାବାସ୍ତ୍ର କୈବଲ୍ୟପୁର
ବାଙ୍କତଗ, ଜାମୁପାଟଣା, ଦୁର୍ଗକେଶ୍ବରୀ
ବାନାମ୍ବର ହେ,
ଭୁମ୍ବେଥାଇ ହୋଇଲ ଗୋଚର ହେ ।୬
ଗୋଡପାଟଣା, ଗର୍ଜିମା, ବଲମାନପୁର,
ଗର୍ଣ୍ଣଦ୍ରା, ଯେ ଦର୍ଣ୍ଣାପାଦ୍ବସେ ଆମ୍ବଡାପୁର,
ଦୁଃଖି ଜନ ହେ,
ଆପତ୍ତିଶୁଣ ରଘୁନନ୍ଦନ ହେ ।୭
ମଟରଇସାହି, ସାକେଣ, ବାଲିଆଚତରା,
ଶରଧାପୁର, ବାମ୍ବଣ୍ଡି, ଅଟେ ଘଣ୍ଡକଳା
ଯାହାଧାନ ହେ,
ବଦନକୁ ନୋହିବ ସମାନ ହେ ।୮
ପଥରଗଡ ପ୍ରଣିତମ ବାଉଁଶଗାଡ଼ଆ,
କୁଶଡ଼ିପି, କୋରପିଠା, ନଦନଗାଡଆ
ଯାହା ଶସ୍ୟ ହେ,
ଚଳିବନାହିଁଟି ଦୁଇମାସ ହେ ।୯
ଗୁଣ୍ଡୁରିବାଡ଼ ଦେଖିଲୁ ସେ ଘୋଡାଗାଡ଼ିଆ
ସାବଟିଦେଇପୁର ପାଖେ ବନ୍ଧଳଗାଡଆ
ଦେଖ ଭଷ୍ମ ହେ,
କେତେ ଭାସିମିଣ କେ ସୁସ୍ଥ ହେ ।୧୦
ଲଠିଆପଲ୍ଲୀ, ମଲ୍ଲବନ୍ଧ, ବନାପୁଞ୍ଜପୁର'
ସ୍ବଷଭଠିଗଲ କାହୁଁ ଆସିବ ଆଧାର
ଖାଦ୍ୟ ଉଣା ହେ,
ଅପୁଷ୍ଟଶେଷ ଆଧାରର ବନା ହେ ।୧୧

ରଘୁନାଥପୁର ନୀଳକଣ୍ଠ କୁଣାପାଣ୍ଡେଶ
ଗୋରୁଗାଈ ଚନ୍ଦ୍ରବନ୍ତ ଘଣ୍ଟା, ମେଣ୍ଢା; ଛେଳି
ଜମିପୁଞ୍ଜି ହେ,
ଦେଖିଲେ ଖୁନ ହେଉଛି ହାଣି ହେ ।୧୨

ଗୋଡମାଣ୍ଡ୍ର, ଦରପଦା, ସେ କଲ୍ୟାଣପୁର
କଣ୍ଟସର୍ଟଣ; ବରଡ, ଜଗନ୍ନାଥପୁର
ବନ୍ଧୁଥାଇ ହେ,
ଦୁଇନ୍ଦ୍ରନେ ଗଲ ଶୁଖିହୋଇ ହେ ।୧୩

ବାଉଁଶିଆ, ଶରଣକୁଳ, ନରେନ୍ଦ୍ରପୁର
ପ୍ରସିଦ୍ଧ ଠାକୁର ଜନ୍ମ ସେ ଲଡ଼ୁକେଶ୍ବର
ଲଡୁବାବା ହେ,
ଅନାହାରେ କେ କରବ ସେବା ହେ ।୧୪

ଗୁଞ୍ଜିବାରଣ ଗ୍ରାମରେ ମେ କପିଳେଶ୍ବର
ପନ୍ଦ୍ରେ ତୋଟାମାନ ଦକ୍ଷିଣରେ ନଗ୍ନାଳୁକ
ଧାମସ୍ଥାନ ହେ,
ଭୂମ ଜମି ନୋହିବ ଧନ ହେ ।୧୫

ପୁଆଣିଆ, କଣ୍ଟାବଣିଆ ମଧ୍ୟେ ଗମ୍ଭୀର
ଜମି ଶୁଷ୍କ ହୋଇବାରୁ ଗୋରୁଖାଇ ଘାସ
ନାସ୍ତିପ୍ରଣ ହେ,
କପର ରକ୍ଷିବ ଆମ୍ଭ ପ୍ରାଣ ହେ ।୧୬

ଲେଲେ ଲେଲେ ଲୋକ ଗଲେ ସରକାର ଛୁଟ
ପିଲ ବୁଢ଼ ମ୍ଯୁରେ ସେବ ଭକ୍ତପାନ୍ତ ଭଡ
ରକ୍ଷା ବାସ ହେ,
ଘେନ ଖାଇ ଧନ ଉପାସ ହେ ।୧୭

॥ ୨ ॥

ଭାଉ କହୁଅଛୁ ପୁଅ ବାପା କାହିଁ ଗଲେ
ଏଠାରେ ମୁଲ ପାଣରେ ଆମ୍ଭେ ଚଳୁଥିଲେ
କହ ମୋତେ ହେ,
ସେ ସ୍ଥାନକୁ ଯିବାମୁଁ ଭୁଲିଗଲେ ହେ ।୧୮
ମାଆ କହୁଅଛୁ ପୁଅ ତୁହି ପିଲାଟିଏ
ଅଳ୍ପ ଦିନରେ ଆସିବେ କାହିଁ କରୁ ଶୋକ
ମୋର ଧନରେ,
ତୁମ ହୋଇ ଶାନ୍ତ ନାରାୟଣରେ ।୧୯
ଧନ ଥିବା ଲୋକ କେତେ ଦିନ ଯିବେ ଚଳି
ନିର୍ଧନ ଲୋକ ଗୁଳିଲେ ଓଡ଼ିଶା ବାହାର
ମଧ୍ୟ ଲୋକ ହେ,
କାହିଁ ଯିବେ ଲୋକ ଲଜ୍ୟା ଦୁଃଖେ ହେ ।୨୦
ବନ୍ଧ ପୁଷ୍କରିଣି ଖୋଳା ସଙ୍ଗେ ସଡ଼କ
ତା ମଧ୍ୟରେ ଲାଗିଛନ୍ତି କେତେ କେତେ ଲୋକ
ମାଟି ଖୋଳି ହେ,
ଦୁଃଖେ କେତେ ଦିନ ଯିବେ ଚଳିହେ ।୨୧
କେତେ କେତେ ପଢ଼ା ପିଲା ବେକାର ରହିଲେ
ବସି ଖାଉଥିଲେ ପୁଣି ନଥା ବାଲି ଘରେ
ଜଳଣରେ ହେ,
ବୁଢ଼ାବୁଢ଼ି ଭିତରେ ଚଳିବେ ହେ ।୨୨
ଖର୍ଚ୍ଚ କରି ପାଠ ପଢ଼ି ହୋଇଗଲେ ବେକାର
ତାଙ୍କପାଇଁକି ଯୋଜନା ନକଲେ ସର୍କାର
ନୁହେଁ ଭଲ ହେ,
ପଢାର ରହିଲା ନାହିଁ ମୂଲ୍ୟ ହେ ।୨୩

॥ ୮ ॥

ଯୌତୁକ ଶେଷରେ ଟେନ୍‌ସନ୍ ପାଉଛନ୍ତି
ଦରମା କାଟିବାରୁ ପେନ୍‌ସନ୍ କାଟୁଛି,
ଯେତ୍କଖ ମ୍ରି ହେ,
ପଢାପିଲା କାନ୍ଦନ୍ତି ବସି ଛହ ।୨୪

ଆଏ, ବଏ, ଏମେ ଯେଉଁ ପିଲାଟି ପଢିଛି
ପିଅନ ଯୌତୁକ ଖଣ୍ଡେ ତାକୁ ନମିଳୁଛି
ହୁଏଲଜ୍ୟା ହେ
ଘରେ ବସି ପାଉଅଛି ସଜା ହେ ।୨୫

ପରୁଷ ଷାଠିଏ ଦେଖ ଅଶୀଏ ହଜାର
ଯୌତୁକ ଷଣ୍ଡିଏ ପାଇଁ ହୁଅନ୍ତି ହାହାକାର
ଦେଇଲାଞ୍ଚ ହେ,
ଟଙ୍କା ବୁଡ଼ୁଛି ଯୌତୁକ ମିଛ ହେ ।୨୬

ଅଶୀଏ ହଜାର ଧନ ବ୍ୟବସାୟ କର,
ବ୍ୟବସାୟକୁ ବଢାଇ ଚଳବ ସୁନ୍ଦର,
ନୋହେବ ଦୁଃଖୀ ହେ,
ଯୌତୁକକୁ କରନାହିଁ ଲକ୍ଷ୍ୟ ହେ ।୨୭

ନୟାଗଡ ଏତେ ମୌଜା କରି ଆଲୋଚନା
ଲେଖା ଭୁଲଥିଲେ କରିଦେବ ସଂଶୋଧନ
ସାଧୁବୃନ୍ଦ ହେ,
କ୍ଷମାମାଗୁଛି ଗୋବର୍ଦ୍ଧନ ହେ ।୨୮

—*—

(ସ୍ୱର—ରାଧା ବମ୍ବାଧରୀ ବୃତ୍ତ)

ହେ ପ୍ରଭୁ କଳାକହ୍ନାଇ   ଯାହାମୁଁ ଲେଖିବ ତୁମ୍ଭକୁ ଧାଇ ହେ
ଯାହା ଭୁଲ ହେବ ଦେବ କହି । ମହାପ୍ରଭୁ ହେ ।୧

ବନ୍ଧ ସାହି, ଗୋଠବଣ;   ନନ୍ଦଘୋଷ ସ୍ୱବଶାସନ ହେ
ଗୋରୁ ଅଛନ୍ତି ବହୁ କଷଣ ସୁଜନେ ହେ ।୨। ଘୋଷା ।

ଗ୍ରାମଟି ଅରଖ ପଲ୍ଲୀ   ଓଡ଼ିଆ ନକଟରେ କେନ୍ଦ୍ରପଲ୍ଲୀ ହେ
ମହୁଲିଆ ଅଟେ ପେଠାପଲ୍ଲୀ··· ।୩

ଯାହା ଥିଲ ଆମ ଘର   ଆଜ ପର୍ଯ୍ୟନ୍ତ ଚଳଲ ଆଧାର ହେ
ଏଣିକି ଚଳିବା କି ପ୍ରକାର ··· ।୪

ବଡ଼ପୁଟ ଯେ କରଡ଼ା   ହରିହରପୁର ସେ ପଞ୍ଚରଡ଼ା ହେ
ମରୁଡ଼ ହୋଇ ନୋହିଲ ପୂଡ଼ା··· ।୫

ଗୌଡ଼ପୁଟ, ଗୋଷରଡ଼ା   ଅଖାଣିଆ ମାନପୁର, ଆରଡ଼ା ହେ
ବିକ୍ରି ହେବେ ଗୋରୁ ଗାଈ ହଡ଼ା··· ।୬

ହାଟରେ ବିକ୍ରି କରିବ   ସବୁତ ମରୁଡ଼ି କିଏ କିଣିବ ହେ
ଜନ୍ତୁ ଲେଉଟିଲେ କଷ୍ଟ ହେବ··· ।୭

ବର୍ଷା ହେଉଛି ଏଭଳି   ଯେବେ ବର୍ଷା ହେଲେ ନମରେ ଧୂଳହେ
ଗଛ ପତ୍ର ଯାଉଛି ଝାଉଁଳି··· ।୮

ଜମି ହୋଇଲା ଗୋଚର   କଟିଲା ଗୋରୁଗାଈଙ୍କ ଆଧାର ହେ
କପଟ ହେବ ଘର ଛପର··· ।୯

ଓଡ଼ିଆ ଯେ ଧବଳାଇ   ଚେମେଡ଼, ବାଣ୍ଠପୁର, ପୋଡାସାହିହେ
ଅତି ଦୁଃଖରେ ଚଳନ୍ତି ସେହି ହେ··· ।୧୦

ଜଙ୍ଗଲରେ ଘର କଲ    ଜମ୍ବୁସମ, ନେପାଳ, ନାଣ୍ଡିଗିରି ହେ
ପାଳଆ ଝର ସେ କୁଟିକଣ··· ।୧୧

ବନସ୍ତରେ ଭର ଘର    ବେପାର ବଣିଜ ନାହିଁ ତାଙ୍କର ହେ
ଫଳ ମୂଳ କରନ୍ତି ଆହାର    ।୧୨

ଗ୍ରାମ ଗଲେ ବନବାସ    ବନସ୍ତେ ରହିଲେ ଚଉଦ ବର୍ଷ ହେ
ଫଳ ମୂଳ ଭରୁଥିଲେ ଗ୍ରାସ··· ।୧୩

ପ୍ରଭୁଙ୍କୁ ଥିଲା ଏ ଯୋଗ    ଚଉଦଟି ବର୍ଷ କଲେ ସେ ଭୋଗ ହେ
ଲେଖା କୁ କେ ଅନ୍ୟଥା କରିବ··· ।୧୪

ଇନ୍ଦ୍ରଙ୍କର କୁଟ ହେଲା    ଛଅଟି ଫସଲ ଲେପ୍ୟ ହୋଇଲା ହେ
ବର୍ଷା ଯୋଗୁଁ ପଡ଼ିଆ ରହିଲା··· ।୧୫

ପ୍ରଭୁଙ୍କ ନୋହେ କରୁଣା    ଧାନଗଲା ମୁଗ ନହେଲା ବୁଣା ହେ
ଗହମ, କୋଳଥ, ବର, ଚଣା··· ।୧୬

ଜଳ ନଥାଇ ବେଉଷା    ଗୁଆନ୍ଦ, କୋହଙ୍ଗ, କୁରାଡ଼ି ଘଷା ହେ
ବନ୍ଧନ ପାଇବା ପାଇଁ ଆଶା··· ।୧୭

ଭାଦ୍ରବ ସିଂହ ମାସରେ    ଜଳ ପଡ଼ିଲା ନାହିଁ ବସୁଧାରେ ହେ
ନିଆଁ ଲାଗୁଛି ସେହି ଦିନରେ··· ।୧୮

ହରିପୁର ଗ୍ରାମ ଦେଖ    ପନ୍ଦର ଦଣ ଛପ୍ପାନବେ ତାରିଖ ହେ
ସେହି ଦିନ ନିଆଁ ହେଲା ଦେଖ··· ।୧୯

ନିଆଁ ଲାଗେ ଯେଉଁ ଘରେ    ଜୀବରକ୍ଷାପାଇଁ ରହେ ବାହାରେହେ
ଜିନିଷ ପତ୍ରକୁ କେ ପଚାରେ··· ।୨୦

ଦୁଇଟି ଦଅମ କଳ    ସେ ମୌଜାକୁ ହୋଇଥିଲା ହାଜର ହେ
ନିଆଁ ଲିଭିବ ଗୁଡ଼ିଲେ ଜଳ··· ।୨୧

ଘର ପୋଡ଼ିକ ମଠୁଡ଼ି     ଏପରି ବିପଦ ଆସୁଛି ମାଡ଼ି ହେ
ପ୍ରଭୁ ହସାରୁ ଦେବେକ ଛଡ଼ି ।୨୨

ପ୍ରଭୁକାକୁ ଦେଲେ ଧନ     ଆମ୍ଭଘର ଖାଲି ହୋଇଛି ଶୂନ୍ୟ ହେ
ଆମ୍ଭ ପେଟକୁ ନମିଳେ ଅନ୍ନ ।୨୩

ନାମ ଖୋଳିଆ ଖବର     ପ୍ରଭୁ ନିଜ ଧନ କରିଲେ ଘର ହେ
ପୂର୍ଣ୍ଣ ହୋଇଲା ତା ଘରଦ୍ୱାର ।୨୪

ଗୃଉଳ ଯେ ମୁଗଜାଇ     ଘୃତ ନବାତ ଛେନା, ଦୁଧ, ଦହି ହେ
ଘର ସଙ୍ଗତରେ ଥିଲେ ନେଇ ।୨୫

ଖବର ମାତା ବଚନ     ଆଜ ମୋ ଘରେ ନାହିଁଟି ସ୍ଥାନ ହେ
ପ୍ରଭୁ କହନ୍ତି ମୋଘର ଶୂନ୍ୟ ।୨୬

ମାତା ତାହାର କହୁଛି     ଏଅଚୋର କେତେ ମୂଲ୍ୟ ହଉଛି ହେ
ପ୍ରଭୁ କହିଲେ ଆଗ୍ର ପାଇଛି ।୨୭

ଦେଖୁଛନ୍ତି ପୁଅ ଚୋର     ନେବନାହିଁ ମୁହିଁତ ଦୁଇଥର ହେ
ମୁଁ ଯାଉଛି ରଖ ଧନଚୋର ।୨୮

କାହୁଁ ଆସିଲା ଖବର     ଦେଖିଲା ପୂର୍ଣ୍ଣ ହୋଇଛି ତା ଘର ହେ
ମନେଖବଲା ଯେ ବଂଶୀଧର ।୨୯

ମାତାକୁ କହେ ଖବର     ମୂଳିଆ ବୋଲି ଖବାଲୁ ମନର ହେ
ଯେଅଟନ୍ତି ଜଗତ ଠାକୁର ।୩୦

ଯାଜପୁରେ ତାଙ୍କଘର     ବଂଧୁ ମହାନ୍ତି ନାମଟି ତାଙ୍କର ହେ
ହେଉ ନନାଠାରେ ନେ ହଜାରି ।୩୧

ପିଲା ବୂଟ ମୁଖକୁ ଧରି     ଡାକିଲ ପ୍ରଭୁ କାହାନ୍ତି ଶ୍ରୀହରି ହେ
ତା ଡାକକୁ ଥିଲେ କର୍ଣ୍ଣ ଡେରି ।୩୨

ସୁବର୍ଣ୍ଣ ଥାଳକୁ ଧରି     ଦିବ୍ୟଶାଳୀ ଅନ୍ନ ତହିଁରେ ଭରି ହେ
ବଂଧୁ ନଅହେ ଖାଦ୍ୟ ତୁମ୍ଭର ।୩୩

ସ୍ତ୍ରୀ କହୁଛନ୍ତି ଶୁଣ     ଡାକୁଛନ୍ତି ପ୍ରଭୁ ଯେ ନାରାୟଣ ହେ
କର ଦେଉଛନ୍ତି ଯାଇ ଅଣ ।୩୪

ଦାସ କହେ ଶୁଣି କର ଅନେକ ବନ୍ଧୁ ଅଛନ୍ତି ତାଙ୍କର ହେ
ତାଙ୍କ ନାଁ ଜାଣ ସେ ନାଁ ଧର... ।୩୫

ପ୍ରଭୁ ଡାକୁଛନ୍ତି ଆସ ଯାଜପୁର ଘର ହେ ବନ୍ଧୁ ଦାସ ହେ
ନାଅ ତୁମ୍ଭ କୁଟୁମ୍ବର ଗ୍ରାସ... ।୩୬

ଦାସିଆ ବାଉରୀ ନେଇ ଅନ୍ୟ ହସ୍ତେ ଏକ ନଡ଼ିଆ ଦେଇ ହେ
ଦାସ ଦେଇଛି ତା ହସ୍ତେ ନାହିଁ... ।୩୭

ସେ ହେଲେ ଏତେ ବିଶ୍ୱାସ ଆମଠାରେ କରିଲେ ଅବିଶ୍ୱାସହେ
କି ଦେଇ କଲେ ତାଙ୍କୁ ସନ୍ତୋଷ...।୩୮

ଗଡଗାଁ, ବାସୁପଲ୍ଲି ଛାଲପାଟଣା ସେ ଚମ୍ପାପାଣ୍ଡେର ହେ
କେତେ ଗଲେ ଜାମ୍ମୁ କାଶ୍ମିର... ।୩୯

ଖାଦ୍ୟ ହୋଇଗଲା ଉଣା ତେଲପଡ଼ା ପାଖେ ଝଲପାଟଣା ହେ
ଘରୁ ନେଇ ହେଲା ବୁଧିବଣା... ।୪୦

ନୂଆଗାଁ, ଚଢେଇ ପଲ୍ଲୀ ଇନ୍ଦ୍ରମାନପୁର ସେନଗୋଡ଼ପଲ୍ଲୀ ହେ
ମନ୍ଦ୍ର ସମାସ୍ୟା ଦେଖୁଥିଲି... ।୪୧

ମୁସ୍କିଲ ହୋଇଲା ଭ୍ରମ ହସ୍ତରୁ ଖସି ପଡ଼ିଲା କଲମ ହେ
ମୁଁ ଘରକୁ ବାନ୍ଧିନେବ ଯମ... ।୪୨

ମୁଣ୍ଡ ମୋର ଭଲ ନାହିଁ କେଉଁ ମୌଜା ଛୁଡ଼ି ଆସିଛି ମୁହିଁ ହେ
ଥିଲା ତାରବାଟି, ବରସାହି... ।୪୩

ବୁଢିକି ହୋଇଲା ବଣା ଦୁଇଗୋଟି ମୌଜା ନଥିଲା ଜଣା ହେ
ଅସୁରଢିପା, ମୁଗଦାଟଣା... ।୪୪

ଏହି ମରୁଡ଼ି ଦାରଶ ନୁହଇ ସଂସ୍କୃତ ନୁହେ ସାହିତ୍ୟ ହେ
ଯାକୁ ପଢିବେ ପିଲା ସମସ୍ତ... ।୪୫

ପ୍ରଭୁଙ୍କୁ କରଣ ଧ୍ୟାନ ଗୋବିନ୍ଦ ଚନ୍ଦ୍ର କରଇ ରଚନ ହେ
କ୍ଷମା ଦେବ ସର୍ବ ସାଧୁଜନ... ।୪୬

## —* ରାଗ ଚୋଖି *—

ପ୍ରଭୁ କରୁଣା ସାଗର ଏମରୁଡ଼ ସମାଗ୍ରର
ତୁମ୍ଭ କୃପାହେଲେ କହୁ ଲେଖିବ ମୁହିଁ,
ଚଉଦ ମସିହା ଜନ୍ମ ଚେଯ୍ୟାଅଣି ବର୍ଷ ଜାଣ
କଥା ମଥା ଏଦୁଇଟି ମୋହର ନାହିଁ,
ହେ ପ୍ରଭୁ କରୁଣା ସାଗର;
କଲମ ଧରୁଛି ନାମ ସ୍ମରି ତୁମ୍ଭର ।୧

ଧୂମା, ଶିଖରପୁର ଗୋଲଗାଁ, ପାଣିଭଣ୍ଡାର
ଖିଲରପାଟଣା ଅଟେ କୁରୁମୁଣ୍ଡାଳ
କୁଟୁଣି, ଗନ୍ଧବାରଣ ଦଧିସାହି, କୁଞ୍ଜବନ
ଗୋଛ, କୁନ୍ଦପଡା ଖଳସାହି ଶିମିଳ
ଏତେକ ମୌଜା ପଣବାର
ଦୁଃଖେ ଚଳୁଛନ୍ତି ସୁଖେ ନାହିଁ ଆଧାର ।୨

ଆଙ୍ଗସିଙ୍ଗି, ବଡଗୋରଡା ନିକଟେ ସାନଗୋରଡା
ବାହାଣିବା ଧାନ ଚରି ଅଛନ୍ତି ଚୋକ,
ବଲଗୋରଡା, ଗ୍ରାମରେ ଅଛନ୍ତି ବହୁ ଦୁଖରେ
ମରୁଡ଼ି ନୁହଁ ମରୁଡ ଠାରୁ ଅଧିକ
ତାଙ୍କ କଷ୍ଟ ସହି ନୁହଇ
ମରୁଡ଼ିରେ ଲେଖାଗଲା ପାଟୁଳିସାହି ।୩

ମଟିଆଖଣ୍ଡ, ଘଲ୍ୟାଡ, ପଞ୍ଚୁ ବେଲରଗଡ଼
କଜଲଇ, ମକାମାରୁ, ମଶାଣି ଝୋଲ
ଜାକଡା, ଉଅଣାଝର ଟୋଟାପଡା, ଚୋଡ଼ବାଘ
କେଶପାଣିଆଟି ବେଉଷଣ ନଗଲା,
ରଖପ୍ରଭୁ ହେ ନାରାୟଣ
ଆସନ୍ତା କ୍ଷେତ ଦେଖିବୁ ଥିଲେଟି ପ୍ରାଣ ।୪

କୋମଣ୍ଡା, ହରଡ଼ାବନ୍ଧ  ଜାମୁସାହି, ତଲିରବନ୍ଧ
ଖମଣ, ଖଇରପଟି, କଇଁଫୁଲଥା
କୁରୁଡ଼ଙ୍ଗ, ବାଦଭୁଇଁ  ଦେଉଳ, ବଜାଜସାହି
ଡ଼ମିଶର, ଅଟେ କୋଡ଼ଏକୋହାଣିଆ
ଗ୍ରାମ ନାମ ଅଟେ ଭୁଲୁବ
ଗୋରଡ଼ାରୁ ଗ୍ଭଲଗଲେ କ କଥା ସ୍ମର ।୫

ପୂର୍ବରୁ ବହୁତ ଦନ  କରଥିଲେ ବାସସ୍ଥାନ
ଏକୋଇଣି ମସିହାରେ ଗଲେ ପଳାଇ
ଏଠାରେ ବହୁତ ବେଠି  କର ନପାରିଲେ ଖଟି
ବାସ ଗ୍ଭଡ଼ି ଗ୍ଭଲଗଲେ ରହିଲେ ନାହିଁ
ରହିଲେ ସେ ଜଙ୍ଗଲ ତଳ
ଭୁଲୁବ ମୌଜାରେ ବାସ କରଲେ ଜାଣ ।୬

ଗୋଡ଼ପଡ଼ା, ଡମସାହି  ଗୋଡମଡ଼ା, ମାଳସାହି
ଦୁଃଖେ ଚଳୁଛନ୍ତ ବେଗୁଣିଆଁ ପାଟଣା
ହେ ପ୍ରଭୁ ଜଗନ୍ନାଥମୁଖ  କମ୍ପାଇ ଦେଲ ଏ ଦୁଃଖ
ଲକ୍ଷ ଲକ୍ଷ ଲୋକଙ୍କର କଟିଲ ଦାନା
ଆହେ ପ୍ରଭୁ ଘନ ବାନ୍ଧବ
ସ୍ୱପ୍ନରେ କହିଲ ନାହିଁ ମରୁଡ଼ି ହେବ ।୭

ଗୋପିନାଥପୁର, ନୂଆଗାଁ
ଟାଙ୍ଗିପାହ୍ଣ, କାକଳମା
ମତ୍ତଳଆ, କେନ୍ଦୁଡିପି ସେ କେନ୍ଦୁଡେ
ଗ୍ରାମ କଇଁଆପାଟଣା
ଖଣ୍ଡଆ, ଟଳପାଟଣା
ଦର୍ପନାରାୟଣପୁର, ଆନନ୍ଦାପଲ
କେସ୍ତପଡା, ଟଇରପଟି
ମରୁଡ଼ି ହୋଇ ତାଙ୍କର ଶୁଖିଲ ଚୋଟି ।୮

ଗ୍ରାମ ଏଙ୍ଗେଇ; କୋଡର
ଫାସିପଡ଼ା, ହଙ୍କପୁର
ନନ୍ଦପୁର, ସାଆନ୍ତରାପୁର, ଭୁଚଡ଼
ଚହୁଁ କୃଷ୍ଣଚନ୍ଦ୍ରପୁର
ଲଠିପଡ଼ା, ଆଡ଼ଚେର
ଚନ୍ଦ୍ରଶେଖରପୁର, ଦେଉଳ, ଗମ୍ଭାଡ଼
ହେ ପ୍ରଭୁ, କନକେଶ୍ୱର
ନେଗାବନ୍ଧ ନେଖଣ୍ଡୁ ମରୁଡ଼ି ସମାଚାର ।୯

ବଡ଼ଗୋରଡ଼ା ମୋହର
କୁସୁମୀ କୂଳରେ ଘର
ନାମ ଅଟଇ ମୋହର ଗୋବର୍ଦ୍ଧନ ସ୍ୱାଇଁ
ବୈଶ୍ୟ କୁଳରେ ଜନମ
ପଢ଼ିନାହିଁ ଅଭିଧାନ
ଓଡ଼ିଆ ସାହିତ୍ୟ କଣ ମୁଁ ଜାଣିନାହିଁ
ଚରଣ ଛୁଇଁ ତାହା ଉପର
ଏଭବ ସାଗରୁ ମୋତେ କର ଉଦ୍ଧାର ।୧୨

—※—

ମୁଦ୍ରଣ—ମହାଲକ୍ଷ୍ମୀ ପ୍ରେସ୍, କଲେଜ ରୋଡ଼, ନୟାଗଡ଼ ।

